# PALLICHITRA

OR

RURAL PICTURES OF ORISSA.

## Part I.

FOURTH EDITION

BY

NANDAKISHOR BAL, B. A. B. T.

---

# ପଲ୍ଲୀଚିତ୍ର ।

ପ୍ରଥମ ଭାଗ ।

ଶ୍ରୀ ନନ୍ଦକିଶୋର ବଲ, ବି. ଏ. ବି. ଟି. ପ୍ରଣୀତ ।

[redacted]

ଚତୁର୍ଥ ସଂସ୍କରଣ ।

**Printed by V. Kar.**

THE UTKAL SAHITYA PRESS,

**CUTTACK.**

**1925.**

ମୂଲ୍ୟ ତିନି ଅଣା ।   *Price Three Annas.*

# ବିଜ୍ଞାପନ ।



ରାୟ ସାହେବ ଶ୍ରୀଯୁକ୍ତ ନନ୍ଦକିଶୋର ବଳ ବି. ଏ. ବି. ଟି. ପ୍ରଣୀତ ନିମ୍ନଲିଖିତ ପୁସ୍ତକାବଳୀ କଟକର ପ୍ରଧାନ ପୁସ୍ତକାଳୟମାନଙ୍କରେ ମିଳେ । ଏକତ୍ର ପାଞ୍ଚଟଙ୍କା କିମ୍ବା ତହିଁରୁ ଊର୍ଦ୍ଧ୍ୱ ମୂଲ୍ୟର ପୁସ୍ତକ ଗ୍ରନ୍ଥକାରଙ୍କଠାରୁ ନଗଦ ନେଲେ ଶତକଡ଼ା ଟ ୨୫୯ କମିଶନ ମିଳେ ।

| | | |
|---|---|---|
| ୧ । ପଲ୍ଲୀଚିତ୍ର ( ୧ମ ଭାଗ, ୪ର୍ଥ ମୁଦ୍ରଣ ) | | ଟ ୦ ॥୵ |
| ୨ । ନିର୍ଝରଣୀ | ... | ଟ ୦ ।୵ |
| ୩ । ସୀତାବନବାସ | | ଟ ୦ ।୵ |
| ୪ । କୃଷ୍ଣକୁମାରୀ | ... | ଟ ୦ ॥୵ |
| ୫ । ବସନ୍ତକୋକିଳ | | ଟ ୦ ।୵ |
| ୬ । ନାନାବାୟାଗୀତ | .... ... | ଟ ୦ ।୵ |
| ୭ । ଶର୍ମିଷ୍ଠା | ... ... | ଟ ୦ ୳ |
| ୮ । କନକଲତା | ( ଯନ୍ତ୍ରସ୍ଥ ) | |
| ୯ । ତରଙ୍ଗିଣୀ | ( ଯନ୍ତ୍ରସ୍ଥ ) | |



# ଉତ୍ସର୍ଗ ପତ୍ର ।



ପରମ ମାନନୀୟ,

ବିବିଧ-ସଦ୍‌ଗୁଣ-ନିଧାନ,

ଉତ୍କଳର ଭାବୀ ଆଶା ଓ ଗୌରବର ସ୍ଥାନ,

ତାଳଚେରର କିଶୋରବୟସ୍କ ଅଧୀଶ୍ୱର,

ରାଜା ଶ୍ରୀଯୁକ୍ତ କିଶୋରଚନ୍ଦ୍ର ବୀରବର ହରିଚନ୍ଦନ ମହାପାତ୍ର

ମହୋଦୟଙ୍କ ଗୌରବାନ୍ୱିତ ନାମରେ

ଏହି "ପକ୍ଷୀ-ଛନ୍ଦ" ନାମକ କାବ୍ୟ

ଗ୍ରନ୍ଥକାର ଶ୍ରଦ୍ଧା ଓ ସମ୍ମାନ

ସହକାରେ ଉତ୍ସର୍ଗ କଲା ।

# ଭୂମିକା ।

ଟାଲଚେର-ରାଜପ୍ରଦତ୍ତ "ଟାଲଚେର ପଦକ"—ପ୍ରାପ୍ତି-ପ୍ରୟାସୀ ରେଭେନ୍ସା କଲେଜର ବି. ଏ. ଶ୍ରେଣୀଦ୍ୱୟରେ ଅଧ୍ୟୟନକାରୀ ଛାତ୍ରବର୍ଗଙ୍କୁ ପ୍ରତି ବର୍ଷ ଗୋଟିଏ ରଚନା କରିବାକୁ ହୁଏ । ସର୍ବୋତ୍କୃଷ୍ଟ-ପ୍ରବନ୍ଧ-ଲେଖକଙ୍କୁ ପଦକଟି କଟକର ଜିଲ୍ଲା-ବୋର୍ଡ଼ ଦ୍ୱାରା ପ୍ରଦତ୍ତ ହୁଏ । ଖ୍ରୀ: ୧୮୯୭ ମସିହାରେ ଜିଲ୍ଲା-ବୋର୍ଡ଼ର ତତ୍କାଳୀନ ଚେୟାର୍‌ମାନ୍ ଓ ମାଜିଷ୍ଟ୍ରେଟ୍ ପରଲୋକଗତ ଇ. ଏଫ୍. ଗ୍ରାଉସ୍ ମହୋଦୟ ଉତ୍କଳ-ଇତିହାସ, ଉତ୍କଳ-ଭୂଗୋଳ ଓ ଉତ୍କଳୀୟ ପଲ୍ଲୀଚିତ୍ର ବର୍ଣ୍ଣନ ବିଷୟରେ ପ୍ରଶ୍ନ ପଚାରିଥିଲେ । ଘଟଣାକ୍ରମେ ମୋର ରଚନା ସର୍ବୋତ୍କୃଷ୍ଟ ବିବେଚିତ ହୋଇଥିଲା ।

କାର୍ଯ୍ୟସୂତ୍ରରେ ପ୍ରବନ୍ଧଗୁଡ଼ିକ ଜିଲ୍ଲା-ବୋର୍ଡ଼ର ମେମ୍ବର କଟକ ଟ୍ରେନିଂ ସ୍କୁଲର ପ୍ରଧାନାଧ୍ୟାପକ ଭକ୍ତକବି ଶ୍ରୀଯୁକ୍ତ ମଧୁସୂଦନ ରାଓ (ରାୟ ବାହାଦୁର) ମହୋଦୟଙ୍କ ହସ୍ତଗତ ହୁଏ । କଥୋପକଥନ ବେଳେ ଉକ୍ତ ମହୋଦୟ ପ୍ରବନ୍ଧର ଶେଷାଂଶ ଅର୍ଥାତ୍ ପଲ୍ଲୀଚିତ୍ର ମନୋହର ହୋଇଥିବାର କହିଥିଲେ ।

ଏଥି ପୂର୍ବରୁ ମୁଁ ପଦ୍ୟ ଲେଖିବାକୁ ଆରମ୍ଭ କରିଥିଲି । ଉକ୍ତ କଥୋପକଥନ ପରେ ସେହି ଇଂରେଜି ରଚନାର ଭାବରାଜିକୁ ସରଳ ମାତୃ-ଭାଷାରେ ବିସ୍ତାରିତ ଆକାରରେ ଲିପିବଦ୍ଧ କଲି । ଏହାହିଁ ଏହି ପଦ୍ୟଟିର ସମୁଦାୟ ଇତିହାସ ।

# ପଲ୍ଲୀ-ଚିତ୍ର ।



## ପ୍ରସ୍ତାବନା ।

ଶାନ୍ତ-ପୂର୍ଣ୍ଣ ଅଟେ ପଲ୍ଲୀଗ୍ରାମ,
ମଧୁରିମା-ମୟ ତୋର ନାମ,
ନଗରୀର ରାଜା-ସୁଖ  ମୋହ ପକ୍ଷେ ଘୋର ଦୁଃଖ,
ଅଗୋ ପ୍ରିୟପଲ୍ଲି ! ତୋ ପଲ୍ଲବମୟ ଅଙ୍କ,
ଛାୟାତଳ ଅଣ୍ଡିବାକୁ ମୁହିଁ ସଦା ରଙ୍କ । ୧ ।

ପ୍ରାଥମିକ-ମାନବ-ବସତି
ଅଟୁ ତୁ ଗୋ ସୁସରଳା ସତୀ,
ଗର୍ବିତ ଉଚ୍ଚପଦସ୍ଥ  ପାଶେ ତୁହି ଅପଦସ୍ଥ
ହେଲେ ହେଲୁ ଚିନ୍ତା ନାହିଁ, ଭାବୁକ ଉପଙ୍କ
ଆଦର କରନ୍ତି ତୋତେ, ନ କରନ୍ତୁ ଅଙ୍କ । ୨ ।

ଜାଣଇଁ ତୁ ନୋହୁ ନିଷ୍କଳଙ୍କ,
ଏ ଜଗତେ କିଏ ଅକଳଙ୍କ ?
ତଥାପି ନଗର ପାପ  ବିଭୀଷିକା ଦୁଃଖ ତାପ
ତୁଳନାରେ ତୋ କୁଟୀର ଅଟେ ଶାନ୍ତିମୟ,
ପଲ୍ଲୀ-ସରଳତା-ଶାନ୍ତି ରଖ କୃପାମୟ ! । ୩ ।

ସୁବର୍ଜ୍ଜିତ ପଲ୍ଲୀ-ଉପବନ,
ପଲ୍ଲୀ-କନ୍ୟା-ସରଳ-ଆନନ,
ଯୌବନର ପ୍ରେମ-ମଧୁ- ପାନାସକ୍ତା ପଲ୍ଲୀବଧୂ
ତରଳ ଅପାଙ୍ଗ ଅହା କିବା ମନୋଲୋଭା,
ଧନ୍ୟ ଧନ୍ୟ ପଲ୍ଲୀ ତୋର ନୈସର୍ଗିକ ଶୋଭା । ୪ ।

ପଲ୍ଲୀବାଳକର ନାନା ଖେଳ,
ପଲ୍ଲୀର ସେ ବଣଭୋଜି ମେଳ,
ପଲ୍ଲୀ-ସାମୟିକ-ହାଟ, ପଲ୍ଲୀର ସେ ଘନଘାଟ,
ପଲ୍ଲୀ-ପଞ୍ଚାୟତ-ସଭା, ପଲ୍ଲୀ-କାରବାର,—
ପଲ୍ଲୀ-ସ୍ମୃତି ଖୋଲି ଦିଏ ଶୋଭାର ଦୁଆର । ୫ ।

କାଳ ସର୍ବ୍ବନିକୃନ୍ତନକାରୀ,
କିନ୍ତୁ ତାର ନ ରହେ କାହାରି,
ଯାଏ ପ୍ରିୟ ପୁରାତନ, ଆସଇ ନବ୍ୟ-ନୂତନ,
ପୁରାତନ ପଲ୍ଲୀର ସେ ଦୃଶ୍ୟ ମନୋହର
ଚିତ୍ରି ପାରିବ କି ଭାଇ ନବଚିତ୍ରକର ? ୬ ।

——o——

# ପ୍ରଥମ ଦୃଶ୍ୟ ।

## ପଲ୍ଲୀବାସୀ ।

ଗ୍ରାମେ କାହିଁ ବସି କାକଗଣ
ଘନଘନ କରନ୍ତି-ନିସ୍ୱନ,
ଆନନ ବଙ୍କିମ କରି ଶୁହୁଁ ଛନ୍ତି ଉଡ଼ି ଉଡ଼ି,

ଏ ଗୃହିଣି ଭଙ୍ଗି ତାଙ୍କୁ କିଏ ଶିଖାଇଲା,
କି ଗୂଢ଼ ଉଦ୍ଦେଶ୍ୟେ ବିହି ଏହା ଭିଆଇଲା ? ୭ ।
"ଅରେ କାକ ଆସ ଆସ ଆସ,
"ପିତା ଭ୍ରାତା କରନ୍ତି ପ୍ରବାସ,
"ବସି ଏ ତଣ୍ଡୁଳ ଭାଗେ    ଖାଇ କାକ ଅନୁରାଗେ
"କେ ବାନ୍ଧବେ ବିଦେଶରୁ କହ ଉଡ଼ିଯାଅ,
"ବୃଥା ପୁଣି କାହିଁପାଇଁ ରାବ କାଅ କାଅ ?" ୮ ।
କହି ଏହା ଅଳପବୟସୀ
ଯାଏ ଶିଶୁ ଗୃହେ ହସି ହସି,
କହେ ତହିଁ ପରିହାସେ    ଯାଇ ଭ୍ରାତୃବଧୂ ପାଶେ,—
"ଫେରି ଆସୁଛନ୍ତି ଭାଇ ତେଜିଣ ବିଦେଶ,
"ଆସ ଗୋ ସୁନ୍ଦରି ଆଜ ବାନ୍ଧ ମୁକ୍ତକେଶ ।" ।୯।
ଉଡ଼ନ୍ତି ପକ୍ଷୀଏ ରାବ ଦେଇ,
ଶିଶୁ ସବୁ ଉଚ୍ଚା କେମାଦେଇ,
ଅନାଇ ବିହଙ୍ଗ-ପାନ୍ତି    କହେ ତାଙ୍କୁ ହସ୍ତ ଠାରି,—
"ଆସ ଆସ ଚଢ଼େଇ, ରେ ମୋ ପିଣ୍ଡାରେ ବସ,
"ଖାଇବାକୁ ଦେବି ତୋତେ ନଡ଼ିଆର ରସ ।" ।୧୦।
ରାଜପଥେ ପଥିକ-ଦର୍ଶନେ
ବିଚାରନ୍ତି ଗ୍ରାମେ ନାରୀଗଣେ, —
"କାହୁଁ ଆସେ, ଯାଏ କାହିଁ,    କେଉଁଦୂରେ ଅଛି ଧାଇଁ
"କାହିଁ ଘର ବାହାରିଲା, ଏଣେ କେଣେ ଗଲା,
"କେଉଁ ଦୂର ପରବାସେ ଯାଉ ଅଛି ଭଲା ?" ୧୧ ।

‘‘ଶାଗୁ ଶୁଅ’’ ଆଦ କେତେ ଖେଳ
ଖେଳନ୍ତି ବାଳକେ ହୋଇ ମେଳ,
“ଅଲୋ ଶାଗୁ ଅଲୋ ଶୁଅ        କାହା ହାତେ କଦାଗୁଅ
କହ”ବୋଲି ଜଣେ କାଠି ଧରି କାହା ହସ୍ତେ,
ଶେଷର ହେବା ଭୟେ ମୌନେ ରହନ୍ତି ସମସ୍ତେ ।୧୨।
କୁଉଁ କୁଉଁ ବାଜଇ କେନ୍ଦରା,
ନାଥ ଅପେ ଭିକ୍ଷା ମାଗେ ପରା ?
ଗାଇ ରାମ-ବନବାସ        କୃଷ୍ଣ ମଥୁରା-ପ୍ରବାସ
ବେଳେ ବେଳେ ବଜାଇଣ ହରେ ଜନମନ,
ପୂର୍ଣ୍ଣି ଥାଳେ କରେ ନାଥ ସ୍ୱସ୍ଥାନେ ଗମନ । ୧୩ ।
ଯେନ କେଳା କେଳୁଣୀଙ୍କ ସଙ୍ଗେ
ହାଣ୍ଡେ ନାଉଧୁଡୁକ କ ରଙ୍ଗେ
ବଜାଇ ଗାଉଛନ୍ତି ଗୀତ !        ଶୁଣିଣ ମୋହିତଚିତ୍ତ
ଦଅନ୍ତି ତଣ୍ଡୁଳ ତାଙ୍କୁ ବାଳକ ବାଳିକା,
କିଣନ୍ତି ତାଠାରୁ ବଣୀ ଗୋବଂଶୀ କାଳକା । ୧୪ ।
ଶାଖାଯୁକ୍ତ ବଟବୃକ୍ଷ ମୂଳେ
ପଲ୍ଲୀ-ପୁଷ୍କରିଣୀ-ଜଳ-କୂଳେ
ଗ୍ରାମ-ସୀମନ୍ତିନୀକୁଳ        ହୋଇଣ ସ୍ନାନାର୍ଥେ ଠୁଳ
କହୁଛନ୍ତି ପରସ୍ପର ସୁଖ ଦୁଃଖ କଥା,
ସ୍ନାନ ସାରି କେହି ନାସି ପୋଛୁଅଛି ମଥା । ୧୫ ।
ସରସୀର ବପସ୍ୱିତ ତୀରେ
ପ୍ରତିଛାୟା ପକାଇଣ ନୀରେ

ବସି ହଂସ ବକସଙ୍ଗ                    ପକ୍ଷ ପକ୍ଷ ଆନ୍ତି ପାଙ୍କ,
କୂଳେ ହୁଲୋଳତ-କାଳ-ମୃଦୁଳ-ଲହରୀ
ଦେଖି ଚମକ ଉଠନ୍ତି ବକେ ଡର ଡର । ୧୬ ।

ଶୁଣି ଗଡ଼ୁଡ଼ୁଣୀ-ଉଚ୍ଚଭୁଣ୍ଡ
ଗ୍ରାମନାରୀମାନେ ହୋଇ ଜୁଣ୍ଡ,
ଦହି ଦୁଧ କେ କଣନ୍ତି,       କଥିଲ୍ସ ଲୋକେ ବୋଲନ୍ତି,—
"ହାତେ ଧନ ଥିଲେ ସିନା ପୂରଇ କାମନା,
"ଦୁଃଖୀର ଜୀବନ ସିନା ବୃଥ-ବଡ଼ମ୍ବନା !"।୧୭।

"ଲୁଣ ତେଲ ମସଲ୍ଲ ଗୋ ନଥ,
"ଗଡ ପାଳ କାନ ଫୁଲି ଦଅ"
ଶୁଣି ଏ ଉଠିଥ ଡାକ                    ଘରଣୀଏ ଡାକ ହାକ
ହୋଇଣ ଆସନ୍ତି, ପୁଣି ହୁଏ ଦେବା ନେବା
ଧାନ, ଚଉଳ, ପଇସାରେ, ମିଳେ ଯାହା ଯେବା ।୧୮।

ବାନ୍ଧ ଶିରେ ମେରୁସମ ଯୁଡ଼ା
କାଖେ ଯେନ ସନ ମୂଡ଼ି ଚୂଡ଼ା
ଗୁଡ଼ଆଣୀ କେଉଟୁଣୀ                    ପାଦେ ମୁଦ ରୁଣି ଝୁଣି
ବୁଲି ଗ୍ରାମେ ଘରେ ଘରେ ଫେରାନ୍ତି ପସରା,
ଧାନ କିବା ଚଉଳରେ ଯେ ପାରୁ ହୁଏ ଭରା ! ୧୯ ।

ଦେଖି ପ୍ରିୟ ଖାଦ୍ୟ ଶିଶୁଗଣ
ପ୍ରାଣ ଛନ୍ଦି କରନ୍ତି ଅର୍ପଣ,
ମାତା ପାଶେ କର୍ଣ୍ଣ ଅଳ                    ପୃଷ୍ଠିପାବେ ଯାନ୍ତି ଚଳ

ଅନନ୍ୟେ ବିହ୍ୱଳ ପାଇ ଅକାଳର ତାଡ଼ି,
ଦରିଦ୍ରସନ୍ତାନ-ନେତ୍ରୁଁ ବହେ ଅଶ୍ରୁଧାର । ୧୦
ଗ୍ରାମ ମଧ୍ୟେ ଭାଗବତ ଘର
ନାନାବିଧ ଶାସ୍ତ୍ରର ଆକର,
ସନ୍ଧେ ଏହିଠାରେ ଆସି ବସି କେତେ ଗ୍ରାମବାସୀ
ଶୁଣନ୍ତି ମହାଭାରତ, ଗୀତା, ରାମାୟଣ,
ଅଷ୍ଟାଦଶ ପୁରାଣାଦି ଶାସ୍ତ୍ର ଅଗଣନ । ୧୧ ।
ଗ୍ରାମ ଜମିଦାରଙ୍କର ଘର,
ଦାଣ୍ଡେ ଚାଲିବାକୁ ମାଡ଼େ ଡର !
ସାରଣ ସ୍ନାନ ପ୍ରଭାତେ ଉଚ୍ଚପିଣ୍ଡାରେ ସାଆନ୍ତେ
ବସିଣ କରନ୍ତି ସେବା ପୂଜା ବିଧିମାନ,
ପ୍ରଜାଗୁହାରି କଥାରେ ଡେରିଥାନ୍ତି କାନ । ୧୨ ।
ଟଙ୍କା, ଧାନ, ସୁଧ, ମୂଲଜମା,
ସତ୍ୟ ମିଥ୍ୟା ଯେତେ ମକଦମା,
କଳହ ଅନର୍ଥ ମୂଳ, ସକଳ ଏଠାରେ ଠୁଳ,
ମାରମ୍ମକ ଠେଙ୍ଗା ହାତେ ଜଗା ଚଉକିଆ,
ପାଣରୁ ବ୍ରାହ୍ମଣ ନାହିଁ ଏଠାରେ ଅଦଆ । ୧୩ ।
ସାଆନ୍ତାଣୀ ସଦା ଭକ୍ତିମତୀ,
ଭୋକୀ ଶୋଷୀ ରୋଗୀଙ୍କୁ ନେଉଡ଼ନ୍ତି,
ପାଆନ୍ତି ଜଳ ତୁଳସୀ, ଭାଗବତ ଘରେ ବସି
ଶୁଣନ୍ତି ଭାରତ, ରାମାୟଣ, ଭାଗବତ,
ପଚବାର ମଙ୍ଗଳରେ ଅହୋରାତ୍ର ରତ । ୧୪ ।

ବଧୂଗଣ ରୂପ-ଗୁଣ-ବତୀ,
ଗୁରୁଜନ-ପାଦେ ଥାଏ ଭକ୍ତି,
ଗୃଙ୍ଗୁଡ଼ା ବୁଣାଦି କାର୍ଯ୍ୟ   କରୁଥାନ୍ତି ଅନିବାର୍ଯ୍ୟ,
ଚନ୍ଦନଘୋରା ଇତ୍ୟାଦି ଅନେକ ଶାଣ୍ଢଣା,
ଦେଖିଲେ ବିଦେଶୀଙ୍କର ହେବ ବୁଦ୍ଧି ବଣା । ୧୫ ।

ବଡ଼ଘରଙ୍କୁମାରୀ-ଦୁହିତା
ଦାଣ୍ଡକାନ୍ଥେ ଲେଖିଛନ୍ତି ଚିତା
ପଦ୍ମବନ୍ଧ ନାଗବନ୍ଧ —   ଆଦି କେତେ ଚକ୍ରବନ୍ଧ,
ଅନ୍ତର୍ଲିପି ବହିର୍ଲିପି ଗୋମୂତ୍ରାଦି ଛନ୍ଦ,
ଶ୍ରୀରାମରାବଣ—କୁରୁପାଣ୍ଡବଙ୍କ ଦ୍ୱନ୍ଦ୍ୱ । ୧୬ ।

ଦେଖୁଛୁ ଦୈବଜ୍ଞ ଅପି କୋଷ୍ଠି,
ବସିଛନ୍ତି ଖଣ୍ଡାପୃଢଗୋଷ୍ଠି,
ଭାଲେ ଗୋରଚନା-ଟୋପା,   ଶିରେ ଶୋଭେ ଝୁରୁ ଚମ୍ପା,
ପାଟଲ୍ଲା କଣ୍ଠାବାଇଁଶୀ ବାଡ଼ୀଟି ଜଙ୍ଘରେ,
ପାଟନ୍ନ ଗାମୁଛ ରଜେ ପଇତା ସଙ୍ଗରେ । ୧୭ ।

କଉଣ ଆଖଡ଼ା ପଲ୍ଲୀପ୍ରାନ୍ତେ
ଖଣ୍ଡାଢ଼ିଖେଳେ ମାତନ୍ତି ବର୍ଷାନ୍ତେ,
ବଳିଷ୍ଠ ଯୁବକବର   ବୁଲନ୍ତି ଶକ୍ତି ମୁଦ୍ଗର
ବନାଉଁଟି ଛଡ଼ ଖେଳେ ଭ୍ରାତା ସଙ୍ଗେ ଭ୍ରାତା,
ଦେଖି ଏହା ମନେ ପଡ଼େ କାଞ୍ଚୀଯୁଦ୍ଧବାର୍ତ୍ତା [୧] । ୧୮

---

୧ । ଉତ୍କଳର ରାଜା ପୁରୁଷୋତ୍ତମ ଦେବଙ୍କ ନେତୃତ୍ୱରେ ଓଡ଼ିଆ-ମାନେ କାଞ୍ଚୀଜୟ କରିଥିଲେ । ସେହି ଜାତୀୟ ବିଜୟର ସୂଚନା ଏହି ପଲ୍ଲୀପ୍ରାଙ୍ଗଣ ସାଧନାକ୍ଷେତ୍ରରେ ଦେଉଥିଲା ।

ଖଣ୍ଡାଏତ କରଣ-ମଣ୍ଡଳୀ
କାହିଁ ଦରବାରେ ଯାନ୍ତି ଚଳି,
କଟିରେ ଚଦର ଭଡ଼ା, ହାତେ ଅଛି ପାଞ୍ଜିବଡ଼ା,
ଅଣ୍ଟାରେ ହୋଇଛି ଖୋସା ମୁନିଆ ଲେଖନ,
ଏହି ମୁନେ ବନ୍ଧା ସିନା ନିଖିଳ ଭୁବନ । ୨୯ ।
ପଲ୍ଲୀ ମଧ୍ୟେ ବ୍ରାହ୍ମଣଶାସନ,
ବିପ୍ରଯୁବା କରଣ ଆସନ
ବଲବାଡ କଥା ଶୁଣି ଚୂଡ଼ାଦନ୍ତ ମନେ ଗୁଣି
ପଢ଼େ ମନୁ, ପରାଶର ଅବା ଅଭିଧାନ,
ବଗ୍ରି, ବ୍ରତ, ମନ୍ତ୍ର କିବା ସାଙ୍ଖ୍ୟ, ତନ୍ତ୍ର, ଧ୍ୟାନ ! ୩୦ ।
ବସି ବୃଦ୍ଧପିତାମହ ପାଶ
ନିରନ୍ତର ସେବୁଥାନ୍ତି ନାଶ !
ସ୍ୱରକ୍ତ ହୋଇଣ ବୃଦ୍ଧ କରନ୍ତି ଅଶୁଦ୍ଧ ଶୁଦ୍ଧ,
ମନେ ପଡ଼େ ପୂର୍ବ ଯୁଗେ ବ୍ରାହ୍ମଣ ପ୍ରାଧାନ୍ୟ,
ଥିଲେ ଯେବେ ଏ ବ୍ରାହ୍ମଣେ ଗୁଣେ ଗରୀୟାନ । ୩୧ ।
କାହିଁ ତବ ଚତୁର ଆଶ୍ରମ, [୧]
କାହିଁ ବ୍ରହ୍ମଚର୍ଯ୍ୟ ସେ ନିର୍ମମ ?
ଦାନ ଆଦି ଷଡ଼ କ୍ରିୟା ତେଜ ଚୂଡ଼ାଦନ୍ତକ୍ଷିଅ, [୨]

---

୧ । ବ୍ରହ୍ମଚର୍ଯ୍ୟାଶ୍ରମ, ଗୃହସ୍ଥାଶ୍ରମ, ବାନପ୍ରସ୍ଥାଶ୍ରମ ଓ ଭିକ୍ଷାଶ୍ରମ ପୂର୍ବତନ ଆର୍ଯ୍ୟମାନଙ୍କର ଚତୁର୍ବିଧ ଆଶ୍ରମ ଥିଲା ।

୨ । ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନ, ଦାନ, ପ୍ରତିଗ୍ରହ ଏହି ଷଟ୍‌କର୍ମ କ୍ରିୟାଶୀଳ ପ୍ରକୃତ ବ୍ରାହ୍ମଣଙ୍କର ଜାତୀୟ କର୍ତ୍ତବ୍ୟ ଥିଲା ।

"ବ୍ରହ୍ମ ଜାଣନ୍ତା ବ୍ରାହ୍ମଣ" ହୁଏ ଯେବେ ସତ୍ୟ,
ପ୍ରଣାମ କରିବ ଭାଇ ତୁମ୍ଭଙ୍କୁ କେମନ୍ତ ? ୩୨ ।
ସ୍ୱର୍ଣ୍ଣଗୋଷ୍ଠୀ ବିପ୍ରନାୟକଗଣ
କରି ପ୍ରାତଃସ୍ନାନ ସମାପନ
ଜଳାର୍ଦ୍ର ବସନ ଅଙ୍ଗେ    ମନ୍ତ୍ରର ଗନ୍ଧରେ ରଙ୍ଗେ
ଫେରୁଛନ୍ତି ଗୃହେ; ହେଲେ ବ୍ୟଞ୍ଜନ ରନ୍ଧନ
ଘଣ୍ଟ ପୂର୍ବେ ଆସି କର୍ମ୍ମୀ କରିବେ ଭୋଜନ । ୩୩ ।
ଗ୍ରାମେ କାହିଁ ମହାଜନ ସାଇ,
ବଡି ପିଢା ପୁତ୍ର ଭାଇ ଭାଇ
ବୁଣନ୍ତି ଅଖା ପଲ୍ଲଣ,    କରନ୍ତି ପୁଣି ଦୋକାନ,
ହାନ୍ତି କଡ଼ା ହଜାରରେ କରନ୍ତି ଗଣନା,
ବନ୍ଧା ରଖି ଖାତକର ଜମି ଚଗ୍ରକନା । ୩୪ ।
ଅଛି ମିଠାଗୃହୀ ମହାଜନେ,
କୃପଣତା ଅଶନେ ବସନେ,
ମହାଜନ ବଧୂଗଣ    ପର୍ବତେ କରି ଗମନ
ଶିରେ କାଷ୍ଠ ଘେନ ଗୃହେ ଫେରୁଛନ୍ତି କ୍ଲେଶେ,
ପ୍ରକାଣ୍ଡ ସିନ୍ଦୂର ଥୋପା ଶୋଭେ ଭାଲଦେଶେ । ୩୫ ।
ପତ୍ନୀ-ପୁତ୍ର-ତନୟା ସହାୟୁ
ନିଜ ଦାଣ୍ଡେ ଧାନ ଚଳୁବାୟୁ
କରଇ ବସ୍ତ୍ର ବୟନ    କ୍ଷିପ୍ରହସ୍ତ ଛନ ଛନ;
ଦିନ ରାତ୍ର ଲାଗି ପେଟ ନ ପୂରଇ ତାଙ୍କ,
ଅହୋ ଜୀବନସଂଗ୍ରାମ ବିଷମ ବ୍ୟାପାର ! ୩୬ ।

ନାନାଜାତି ଅଛନ୍ତି ହାଟୁଆ—
ଓଡ଼, ତେଲି, ଗୁଡ଼ିଆ, ବଣିଆ,
ଭଣ୍ଡାରୀ, ଗୌଡ଼, କମାର, ବଢ଼େଇ, ମାଳୀ, କୁମ୍ଭାର
ଥଟାରୀ, ପାଟରା, ଶୁଧ, କେଉଟ ଓ ତନ୍ତୀ,
ତାମିଲି, ଶଙ୍ଖାରୀ; ପୁଣି ଅସ୍ପୃଶ୍ୟ ଜାତି —। ୩୭ ।
ଚମାର, କଣ୍ଡରା, ହାଡ଼ୀ, ପାଣ,
କାଳନ୍ଦୀବୈଷ୍ଣବ, ଧୋବା ଜାଣ
ଗୋଖା, ବାଗୁଡି, ତିଅର, ଡମ, ଲୁହାଡ଼ି, ଶଅର,
ଛତ୍ରିଆ, ଶୁଣ୍ଡୀ, ମୋଚି, କାଆଁଳ ଗଉଡ଼,
କେଲା ଆଦି, ଲେଖୁଁ ଲେଖୁଁ ହେବ ବେଲବୁଡ଼ ।୩୮।
ଗ୍ରାମର ଅଖଡ଼ା ଏହି ସ୍ଥାନେ,
ପ୍ରତିରାତ୍ରେ ନୃତ୍ୟକାରୀମାନେ
ଶିଖନ୍ତି "ଭାରତଲୀଳା" "କୃଷ୍ଣଲୀଳା" "ରାମଲୀଳା,"
ପର୍ବ ପାର୍ବଣେ ଦେଶେ ବିଦେଶେ ନାଚନ୍ତି,
ଅର୍ଥ ଉପାର୍ଜନ କରି କୁଟୁମ୍ବ ପୋଷନ୍ତି,
( ରାଜା, ରାଣୀ, ମନ୍ତ୍ରୀ, ଗଧ ସମସ୍ତେ ନାଚନ୍ତି ! ) । ୩୯।
କଳହରେ ଦୁଇ ବରାଙ୍ଗନା
ପରସ୍ପରେ କରନ୍ତି ବନ୍ଦନା !
କେ ନିର୍ଦ୍ଦୋଷ କିଏ ଦୋଷୀ ? ଦୁହେଁ ନିଜ ନ୍ୟାଯ୍ୟ ଘୋଷି
ବକ୍ତୃତାରେ ଅନର୍ଗଳ କରନ୍ତି ବକ୍ତୃତା,
ସାବାସ୍ ତୋ ଖାଉନାରୀ ସାବାସ୍ ଖରସୁତା ! ୪୦ ।
ମନୋହର ତଟଗିରି ତଟ
ଶୋଭେ କାହିଁ ବୈଷ୍ଣବଙ୍କ ମଠ,

ଶାନ୍ତ ଋଷି ତପୋବନ— ସମ ଥିଲେ ଉପବନ,—
ଅଶ୍ୱତ୍ଥ-ପନସ-ଚୂତ-ବଟ-ବଂଶରାଜି;
କି ନିସର୍ଗ-ଲାବଣ୍ୟରେ ଅଛି ମଠ ସାଜି ! ୪୧ ।
କାଗିଜି, ନାରଙ୍ଗ ଆଦି ଫଳ
ପକ୍ୱ ହୋଇ ନିଜେ ପଡ଼େ ତଳ,
ବୈଷ୍ଣବ-ତନୟାଗଣ କରି ତାହା ଆହରଣ
ଆନନ୍ଦେ ଚଳନ୍ତି ଗୃହେ ଘେନି ପଣନ୍ତରେ,
ଦିଅନ୍ତି ଜନନୀକରେ ପ୍ରଫୁଲ୍ଲ ଅନ୍ତରେ । ୪୨ ।
ଶୁଣିଅଛୁ ଏହି ମଠ ପଶି
ଦେଉଥିଲା ହରିନାମେ ଭରି,
ମନ୍ଦିରା ଝାଞ୍ଜ ମୃଦଙ୍ଗେ ରାମତାଳ ଆଦି ସଙ୍ଗେ
ବଜାଇ, ବୈଷ୍ଣବଗଣ କରୁଥିଲେ ଗାନ
ଭକ୍ତିଭରେ ତ୍ରିସନ୍ଧ୍ୟାରେ ହରିସଂକୀର୍ତ୍ତନ । ୪୩ ।
ହରାଇ ବୈଷ୍ଣବେ ଶୁଭଦିନ
ନିଷ୍ଠା-ଅନୁଷ୍ଠାନେ ଏବେ ହୀନ !
ଯେବେ ଶିଷ୍ୟ ନିମନ୍ତ୍ରଣେ "ଜୈଜୈକାର" ଉଚ୍ଚାରଣେ
ପ୍ରକାଣ୍ଡ ପଙ୍ଗତ ଶେଷ କରନ୍ତି ଭକ୍ଷଣ,
ଥରେ ଯେବେ ଶୁଣାଯାଏ ଦୋମିଶା✣ କୀର୍ତ୍ତନ ।
( ଆହା ସେ ପ୍ରେମଧର୍ମର କି ଘୋର ପତନ ! ) । ୪୪ । *

---

✣ ଦୋମିଶା—ଓଡ଼ିଆ ବଙ୍ଗଳା ମିଶ୍ରିତ ଭାଷାରେ ରଚିତ ଗୀତ ।

* ପ୍ରେମଧର୍ମ—ବିଶ୍ୱଜନୀନ ପ୍ରେମ-ପ୍ରଚାର ବୈଷ୍ଣବଧର୍ମର ବିଶେଷ ଉଦ୍ଦେଶ୍ୟ ଥିଲା ।

ନାନାଗୀତ ଗାଇ ଗ୍ରାମଢାଲେ
ବାଇ ବଂଶୀ ଗ୍ରାମର ଗୋପାଲେ
ଗ୍ରାମପ୍ରାନ୍ତେ ଗୋରୁ ଛଡ଼ ଚରୁ ଚଲେ ଧର ବାଡ଼
ଲୁଦ୍ଧାଟଣ ଅନନ୍ଦରେ ଚରନ୍ତି ଗୋଧନ,
ପକ୍ଷଯୁକ୍ତ ଢାଲଛନ୍ଦ ଦଶେ ଶୋଭିବନ । ୪୫ ।

---

## ଦ୍ୱିତୀୟ ଦୃଶ୍ୟ ।

### ଗ୍ରାମଖଳା ।

ଗ୍ରାମପ୍ରାନ୍ତେ କର ଲୋକେ ଖଳା
·ମେର ପୋଡ଼ ପକାନ୍ତି ବେଙ୍ଗଳା,·
ବାନ୍ଧି ମଞ୍ଚା ମଧ୍ୟ ସ୍ଥାନେ ଜଗନ୍ତି ରାତ୍ରିରେ ଧାନେ,
ମିଛେ ସତେ ଦେଖିଥାନ୍ତି ଯେ ସଙ୍କ ଘଟନା
କଳ୍ପନା ବଳରେ ପ୍ରାତେ କରନ୍ତି ଜଳ୍ପନା ! ୪୬ ।
ପକ୍ଷୀ ଖଳା ପାଶେ ଜଳାଶୟ,
ପ୍ରସ୍ଫୁଟିତ କୋକନଦଚୟ ।
ନାନା ଜଳଚରଗଣ କରୁଥାନ୍ତି ସନ୍ତରଣ,
ହଂସ କାଦମ୍ବାଦି ପକ୍ଷୀ କରୁଥାନ୍ତି ସ୍ୱନ,
ଶୁଣନ୍ତେ ସାନନ୍ଦ ହୁଏ ଭାବୁକର ମନ । ୪୭ ।
ପ୍ରଭାତୁଁ ଉଠିଣ ଗ୍ରାମବାସୀ
ମେଳ ହୋନ୍ତି ଏହିଠାରେ ଆସି,
ଖାଏ ପିକା କେହୁ ବସି, ଗଳ୍ପ କରେ କେହି ହସି,

ମୁହୂର୍ତ୍ତ୍ତକୁ ଛିଙ୍କି କରେ କେ ନସ୍ୟ ଗ୍ରହଣ,
ଜଳ ତୀରେ ବସି କରେ କେ ଦନ୍ତଧାବନ ।
କ୍ଷୌରକର୍ମେ ନାପିତପ୍ରବର,
ବସି କହେ ବିଦେଶ ଖବର,
• ଧର୍ମଶାସ୍ତ୍ରେ ସମରଥ ବୃଦ୍ଧ କହେ ଧର୍ମମତ,
କେହୁ ଗୂଢ଼ କଥା, କେହୁ ବଳର ସମ୍ବାଦ,
ଅନର୍ଥକ ବିଷୟେ କେ କରନ୍ତି ବିବାଦ । ୪୯ ।
ବିଲୁଁ କଟା ହୋଇ ଅଧା ଅଧା
ପ୍ରଶସ୍ତ ଖଳାରେ ଧାନ ଗଦା
ହୋଇଅଛି ରଦା ରଦା, କୃଷକର ଘୋର ଧନ୍ଦା,
ସାହୁ ମହାଜନ ଶୁଣେ କୁଟୁମ୍ବ ପାଳିବ,
ସେହୁ ଧାନ ବିକ ପୁଣି ରାଜସ୍ୱ ଗଣିବ । ୫୦ ।
ଅସ୍ଥିର ଏ ଭବର ବେଭାର,
କିଛି ଚିହ୍ନ ନ ରହେ କାହାର,
ଅଜ ଯେ ମୃତ୍ତିକାଧାର୍ଷି କାଲି ସେ ବାଟଭିକାରୀ,
କିନ୍ତୁ ଭୁଇ କୃଷକ ରେ ଚିରକାଳ ରହୁ
ନିଜ ରକ୍ତ ଦାନେ ପାଳୁ ଏ ବିଶାଳ ମହୀ । ୫୧ ।
ବ୍ରାହ୍ମଣ ସନ୍ନ୍ୟାସୀ ଧନୀ ମାନୀ
ହୋଇଲେହେଁ ଅମ୍ଳ-ଅଭିମାନୀ
ଯେବେ ବା ଭୁ ଅଛି ଜ୍ଞାନ କୋଟ୍ଟ ତାଙ୍କଠାରୁ ହୀନ,
ବୈଶାଖର ଖରା ପୁଣି ଶ୍ରାବଣର ଧାରା
ମାଘମାସଶୀତ ସହୁ ଖଟୁ ବର୍ଷସାରା । ୫୨ ।

ହେ କୃଷକ, ଅଶେଷ କଷଣେ
ସହି ଅର୍ଜ୍ଜୁ ତୁ ଅଳପ ଧନ,
ଅକର୍ମୀ ଅଳସ ଜନେ    ଶୋଷନ୍ତି ନିଷ୍ଠୁର ମନେ
ଭିକ୍ଷୁକ ବ୍ରାହ୍ମଣ ଯୋଗୀ ବୈଷ୍ଣବ ରୂପରେ,
ଭିକ୍ଷାଜୀବୀ-ପ୍ରବଞ୍ଚକ ଅଟନ୍ତି ସେ ନରେ । ୫୩ ।

କର୍ମଭ୍ରଷ୍ଟୀ ଅଳସେ ତୋ ଧନ *
ଦେଇ ପାପ ନ କର ଅର୍ଜ୍ଜନ,
ଅଛନ୍ତି ସକଳେ ହର    ଦେହ ମନ ଦାନ କର,
ସୁସ୍ଥ ଦେହେ ପର-ଧନ ଭୋଗରେ କାହାର
ଅଚଣ୍ଡାଲବ୍ରାହ୍ମଣରେ ନାହିଁ ଅଧିକାର । ୫୪ ।

କିନ୍ତୁ ଦୀନ ଅସମର୍ଥ ଜନେ
ଅନାଥ ତୁ ସଦୟ ନୟନେ,
ହେଲେହେଁ ବ୍ରହ୍ମଚଣ୍ଡାଳ    ନ ବିଚାର ଦେଶ କାଳ
ସାଧ୍ୟ ଅନୁଯାୟୀ କର ତା ଦୁଃଖ ମୋଚନ,
ଧନ୍ୟ ସେ ପରାର୍ଥେ ପ୍ରାଣ କରେ ଯେ ଧାରଣ ।୫୫।

କର୍ମ କର କର୍ମ କର ଭାଇ,
କର୍ମଠାରୁ ପୁଣ୍ୟ ଆଉ ନାହିଁ,
ସାଧୁ-କର୍ମ-ଲବ୍ଧ-ଧନେ    ଆନନ୍ଦେ ଯାପ ଜୀବନେ,
ଶକ୍ତି ଅନୁସାରେ ଦିଅ ଦୁଃଖି-ଭିକ୍ଷା-ପାତ୍ରେ,
ଉଦ୍‌ବୃତ୍ତ ଅର୍ଥ ସଞ୍ଚୟ କର ବିପଦର୍ଥେ । ୫୬ ।

---

* କର୍ମଭ୍ରଷ୍ଟୀ—"କାମଚୋରୀ" ବା ପରିଶ୍ରମକାତର ।

କୃଷି-ଲବ୍ଧ ଶସ୍ୟ ବିକା କଣା
କଲେ ଧନ ବୃଦ୍ଧି ହୁଏ ଦିନା,
ବାଣିଜ୍ୟେ ଷୋଳଣା ଧନ, କୃଷି କାର୍ଯ୍ୟେ ଆଠଧଣ,
ରାଜକର୍ମେ ଗୃହ ପଣ, ଭିକ୍ଷାବୃତ୍ତି ଛାର,
ଧିକ ତା ଜୀବନ ଭିକ୍ଷା ଜୀବିକା ଯାହାର ! ୫୭ ।
ଧନ୍ୟ ଧନ୍ୟ କୃଷକ ରେ ତୋତେ,
ଜନ୍ତୁ ଜନ୍ତୁ ପୋଷୁଅଛୁ ମୋତେ,
ହେଉଛୁ ତୋତେ ମଣେ ଯେହୁ ଅବଶ୍ୟ ନିର୍ମମ ସେହୁ,
ତାର ଗର୍ବେ ସଂସାରର କ ଲାଭ ହୋଇବ !
ତୋ ବିହୁନେ ଏ ସଂସାର କ୍ଷଣେ ନାଶ ଯିବ । ୫୮ ।

———

ତୃତୀୟ ଦୃଶ୍ୟ ।

ଗ୍ରାମ ପାଠଶାଳା ।

ଗ୍ରାମ ମଧ୍ୟେ ଗ୍ରାମ ପାଠଶାଳା,
ଯମଦଣ୍ଡ ଅବଧାନ କାଳା,
ବାଳମାନେ ଯେହୁ ଅଛିବ "ଶୂନ୍ୟ"ଖାଇ ପ୍ରାଣ ଯିବ,
'ଏକ' 'ଦୁଇ'ମାନି ଗ୍ରନ୍ଥେ ହୁଅନ୍ତି ବାହାର,
"ଛପ ନ ଶୁଖୁଣୁ ବସି ଖାଇ ଅଛିବାର" । ୫୯ ।
ଗୁରୁଙ୍କର ବିଦ୍ୟା ଅପ୍ରମିତ,
ଜାଣନ୍ତି ଯେ ଶ୍ଳୋକ ଛନ୍ଦ-ଗୀତ,
ମହାଜନୀ ଜମିଦାରୀ— ହିସାବରେ ଅଷ୍ଟ ଘାରି,

ଲେଖା ଯୋଖା ଖଡ଼ି ପାଠେ, ଅତି ଧୂରନ୍ଧର,
'ପୁରି' 'ଭଉଁରିଆ' ଲେଖା ଅଟନ୍ତି ସୁନ୍ଦର ! ୬୦ ।
କନିଜଘରରେ ଅଛୁ ଖ୍ୟାନ,
ଗ୍ରାମେ "ଗୁଣିବିଦ୍ୟାରେ" ପ୍ରଧାନ,
ଅପାର ତାଙ୍କ ମହିମା, ନାହିଁ ସେ ବିଦ୍ୟାର ସୀମା,
ଏକାଧାରେ ସମାବିଷ୍ଟ ଅହା କେତେ ଗୁଣ,
ଅମୂଲ୍ୟ ଅଟଇ ଅହା ଅତୁଳ ନୈପୁଣ୍ୟ ! ୬୧ ।
ମନେ ପଡ଼େ ଶୈଶବର ଦିନ,
( ଅତୀତ ଗର୍ଭରେ ଯାହା ଲୀନ ),
ଯେବେ ମାତାଙ୍କ ଲୁଗାର ଲେମ୍ବୁ ଅଗ୍ରର ଗେରୁଆ
ଦେଇ ବେଶାବାଡ଼ିଁ ଛଡ଼େ ପାଉଥିଲେ ତାହା,
ଏ ଭଳି ସୁଯୋଗ କିଏ ଛାଡ଼ି ପାରେ ଭାଇ । ୬୨ ।
'ଠ'— ପଢ଼େ ବସି କେନ୍ଦ୍ର କୋଣେ,
'ଦିକ୍ବିଟୁ' ପଢ଼େ ଅନ୍ୟ ଜଣେ,
ଚର୍ଚ୍ଚା ହୁଏ ନାନା ପାଠ— ସଙ୍ଗେ ଅପ୍ରମିତ ଶାଠ,
'ସତରପଲା' ପଢ଼ିଣ ଅଲପ ବୟସେ
ଶାଢ଼ୀ ଦେଇ 'ମାଣା' 'ବଳା' ପଢ଼େ କେ ହରଷେ ।
ପଣକିଆ-ସାଦା-କଡ଼ା-ପାହି,
ଯୋଖ, ଉଡ଼ାଙ୍କ, ମେଲଙ୍କ, ଗାଇ
ହରଗୁଣ, ପେଡ଼ାଂଶା, ଅଙ୍କଗୁଣା, ଧର୍ତ୍ତାଂଶା
ସାଦା-କାଣି-ଦସ୍ତି-ଧାତ-ସମ-ବିଷମାଦ —
ନଳ ପଢ଼ୁଛନ୍ତି ଥୋକେ ଛଡ଼ି କାନ୍ଧ କାନ୍ଧ । ୬୪ ।

ଭିଆଣ, ଭୂଷା, କମ୍ପ-ବିକମ୍ପ,
ମହାନନ୍ଦ-ହର୍ଷାବିଳଚିତ୍ତ,
ଶେଷରେ ଅସଲ-ହରୁ, ପଢ଼ିଲେ ଯା ଶେଷ ସରୁ,
ଲୀଳାବତୀସୂତ୍ର ପୁଣି ଘୋଷେ କେତେଁ ଗୃହ,
ମହାକୋଳାହଳେ କମ୍ପେ ଗ୍ରାମ, ବାଟ, ଘାଟ ! ୬୫ ।

ଲେଖି ଅପରାହ୍ନେ ତାଳପତ୍ର
ବୋଲି ପୁଣି ରାସ ଭାଗବତ
ନାନାବାଦ୍ୟ ଶବ୍ଦମାନ ଧରି ଉଚ୍ଚ ତାନମାନ
ଗାଉଥାନ୍ତି ସ୍ତବବୃନ୍ଦ ବସାଇ ରାଗିଣୀ,
ଗୃହେ ବସି ଶୁଣନ୍ତି ତା ଗ୍ରାମସୀମନ୍ତିନୀ । ୬୬ ।

ପ୍ରଦୋଷେ ବାଳକେ ଶ୍ଳୋକ ମୁଣ୍ଡ
ପୂର୍ବପାଠ କରନ୍ତି ଆବୃତ୍ତି,
ନିଃଶେଷି ସର୍ବ ସାହିତ୍ୟ ପଢ଼ନ୍ତି ପୁଣି ଗଣିତ
ଗୁରୁଙ୍କ ଭୋଜନାସନ କରଣ୍ ବିଧାନ
ଯଥାକାଳେ କରନ୍ତି ସେ ସ୍ୱଗୃହେ ଗମନ । ୬୭ ।

ହାଟ ଦିନ 'ହାଟଗଣ୍ଡା' ନେଇ
ପ୍ରଣମନ୍ତି ଗୁରୁ ପାଶେ ଦେଇ,
ଜନ୍ମପ୍ରାତିଣି 'ବଡ଼ଗୃହେ' ଯାଉଁ ଶୁଳ ଗୁରୁ ହାତେ
'କ-କା-କେ-କୈ' ବନନ୍ତି ସକଳ,
ସେ ଘୋର ଗର୍ଜନେ କମ୍ପେ ବ୍ରହ୍ମାଣ୍ଡମଣ୍ଡଳ । ୬୮ ।

କେହି ଯେବେ ବଡ଼ଗୃହ କାମ
ନ କରନ୍ତି ବୁଝି ତାର ବାମ,

ଅଛିଲେ ଗୁରୁ 'ଢିଙ୍କିଆ' 'ଏକଗୋଡକିଆ-ଠିଆ'
'ମଢ଼ୁଆ-ଶାଙ୍ଖୁଳ' ଆଦ କେତେ କେତେ ଦଣ୍ଡ
ଦେଇଣ କରନ୍ତି ତାଙ୍କୁ ମହାଲଣ୍ଡଭଣ୍ଡ । ୬୯ ।
ଯେଉଁ ଦିନ ପଡ଼ଇ କମାଇ
ଶିଷ୍ୟଗଣ ଇନ୍ଦ୍ରସୁଖ ପାଇ
• ଛାଡି ଖଡି ମେଣ୍ଟା ଘର ଗାଆନ୍ତି ମାଳିଣୀ ଘର
ଡଙ୍ଗ-ଦୀନ କଣ୍ଠି-କୃତ ଛନ୍ଦବନ୍ଧମାନ,
ଯେ ଗୀତ ଶ୍ରବଣେ ଆହା ମେ ହୃତ ମୋ ପ୍ରାଣ । ୭୦ ।
ଭାଦ୍ରେ ପଡ଼େ ଗଣେଶଚତୁର୍ଥୀ,
ଧରନ୍ତି ବାଳକେ ମହାସ୍ଫୂର୍ତ୍ତି,
ଦେଇ ନାନା-ଉପାଦାନ ସଜାଡି ଶୃଙ୍ଗଡ଼ାମାନ,
'ପେଡଲୁଗା' ପିନ୍ଧି, ଶିରେ ଦେଇଣ ଚନ୍ଦନ,
ଇଷ୍ଟପୂଜା ଅର୍ଥେ ହର୍ଷେ କରନ୍ତି ଗମନ । ୭୧ ।
ପୁଣ୍ୟ-ଶ୍ରୀପଞ୍ଚମୀ ମାଘମାସେ
ପୂଜନ୍ତି ସେ ଇଷ୍ଟ ଉପବାସେ,
ଘେନ ଛତ୍ର ନାରକେଳ ହୋଇ ଛତ୍ରବୃନ୍ଦ ମେଳ
ନାନାରଙ୍ଗେ ଗାଇ ଗୀତ ଫେରି ଘରେ ଘରେ
ଅର୍ଜନ୍ତି ଗୁରୁଅର୍ଥେ ଅର୍ଥ ମହାହର୍ଷଭରେ । ୭୨ ।

## ଚତୁର୍ଥ ଦୃଶ୍ୟ ।

### ଗ୍ରାମତୋଟା ।

ଗାଆଁ ତଳେ ଘନ ଅମ୍ବତୋଟା,
ଅଛୁ ଗଛ ଅଛୁ ଗୋଟା ଗୋଟା,

ଦୀନଦୁଃଖିଙ୍କ ସନ୍ତାନ ଧର୍ ଉଚ୍ଚ ତାନମାନ
ହରନ୍ତ ହୃଦସ୍ପୃ-ବଙ୍କ-ଚାଲ-ଗୀତ ଗାଇ,
ଗୋଠାନ୍ତ ପଡର ଜାଲ ଯେନ୍ନଣ ଫୋକାଇ । ୭୩ ।
ବୃକ୍ଷଡାଳେ ବସି ଶୁକଗଣ
କରୁଛନ୍ତ ସୁମଧୁର ସ୍ୱନ,
ପକ୍ୱଧାନ ଖାଇ ଦନ କାଟନ୍ତ ହୋଇ ସ୍ୱାଧୀନ
ଅପି କାଣ୍ଡନଲ ବନ୍ଧ କେଲା ତାଙ୍କୁ ଧରେ,
ବଦ୍ଧ ମୂଲ୍ୟ ନେଇ ନତ ଯାଏ ଗୃହ ଘରେ । ୭୪ ।
ବନଫଳ-ନଦୀଜଳାହାରୀ
ପିଞ୍ଜରେ ଅବଦ୍ଧ ଶୁକ ଶାରୀ,
“ପଢ଼ ହରେ ରାମ କୃଷ୍ଣ ଅମ୍ବା'ରାମ କୃଷ୍ଣ କୃଷ୍ଣ”
କହି ତାଙ୍କୁ ଦଏ କଏ ବିବିଧ ଆହାର,
ରାବ ପକ୍ଷୀ କରେ ଯହୁ ହେବାକୁ ବାହାର । ୭୫ ।
ସ୍ୱର୍ଗସୁଖ ଦଏ ସ୍ୱାଧୀନତା,
ଦାରୁଣ କଷଣ ଅଧୀନତା,
ହୋଇ କ୍ଷୁଦ୍ର ବହଙ୍ଗମ ଜାଣୁ ସ୍ୱାଧୀନତା ମର୍ମ,
ନ ଉଡ଼ିବୁ ଆଉ ତୋର ବିଶାଳ ଗଗନେ,
ବିହରିବୁ ନାହିଁ ଆଉ ପ୍ରିୟା ସଙ୍ଗେ ବନେ । ୭୬ ।
ଗଲେ ଗୃହ ପକ୍ଷୀ କଛୁ ଦନ
ନ ହେବୁ ତୁ ପରାଧୀନେ ଦୀନ,
ଦାସତ୍ୱ-ଶୃଙ୍ଖଳେ ରହି ଗଲେ କଛୁ କାଳ ବହି
ନ ପଡ଼ିବ ମନେ ଆଉ ପ୍ରଶସ୍ତ ଗଗନ,
ଆବଦ୍ଧ ପାତକୀ ପାପପିଞ୍ଜରେ ଯେସନ । ୭୭ ।

## ପଞ୍ଚମ ଦୃଶ୍ୟ ।

### ଗ୍ରାମଦେବତା ।

ଗ୍ରାମପ୍ରାନ୍ତେ ମନୋରମ ସ୍ଥାନ
ଗ୍ରାମଦେବତାଙ୍କ ଅଧିଷ୍ଠାନ;
ଶ୍ରୀଫଳ ଅଶ୍ୱତ୍ଥ ବଟ କରୁଛନ୍ତି ରଙ୍ଗମଙ୍ଗ
ପବନେ ବ୍ରତତୀଯାନ୍ତି ହୋଇଛନ୍ତି ଛନ୍ନ
ଫୁଟି ସୁଗୋଲାପ ଦଶେ ପୁଷ୍ପ ବନ୍ଧ ବନ୍ଧ । ୭୮ ।
କାହିଁ "ହରବୋଲ-ବଟମୂଳେ"
ଦୃଷ୍ଟିଆ ସଙ୍କ୍ରାନ୍ତି ରାତ୍ରେ ଠୁଳେ
ଗ୍ରାମ "ସତଚଣ୍ଡୀ" ଗଣ ଗନ୍ଧ ମହୋତ୍ସବ ଅନ୍ତ
ଭେଦାଭେଦ ନ ବର୍ତ୍ତି ଭୁଞ୍ଜନ୍ତି "ପ୍ରସାଦ",
ଗାଉଥାନ୍ତି "ମନବୋଧ ଚଉତିଶା" ସ୍ତବ । ୭୯ ।
ଝଞ୍ଜଣି ବଜାଇ ସୁଜ୍ଞଜନ
ଗାଉଥାନ୍ତି ଚୌପଦୀ ଭଜନ
ତତ୍ତ୍ୱଜ୍ଞାନସାରେ ଉନ୍ମତ୍ତ ହୋଇ ଭଗବତ ଭକ୍ତ,
ବିପଦକାଳରେ ବସେ "ସପ୍ତା" ଏହି ସ୍ଥାନେ,
ଶୁଣନ୍ତି ଶାସ୍ତ୍ରୀୟ ଗାଥା ଗ୍ରାମବାସିମାନେ । ୮୦ ।

—o—

## ଷଷ୍ଠ ଦୃଶ୍ୟ ।

### ଗ୍ରାମ-ମହାଦେବ ।

ଗ୍ରାମମହାଦେବଙ୍କ ବସତି,
ପବିତ୍ର ପ୍ରଶାନ୍ତ ସ୍ଥାନ ଅତି,
ବିଲ୍ୱଫଳ-ନାରିକେଳ- ଗୁବାକାଦି ବୃକ୍ଷ ମେଳ

ତୋରଣ ଦିଶନ୍ତି ଅହା ବଡ଼ ମନୋରମ,
ଏସ୍ଥାନେ ବସିଲେ ଆପେ ଆସଇ ସଂଯମ । ୮୧ ।
ଶିବଚତୁର୍ଦ୍ଦଶୀ ନିଶାପକ୍ଷେ
ଗ୍ରାମ-ସୀମନ୍ତିନୀ ଆସି ସବେ
ମାଗନ୍ତି ପ୍ରଦୀପ ଜାଳ    ଶିବେ କେତେ ବର ବାଳୀ,
ପ୍ରତିଦିନ, ବାର ପର୍ବେ, ଗ୍ରାମବାସିଗଣ
ଭକ୍ତିରେ ମହାଦେବ କରନ୍ତି ଦର୍ଶନ । ୮୨ ।
ବେଲପତ୍ରୀ ପାଦୁକ ଚନ୍ଦନ
ଯେନ ବସ୍ତ୍ର କରନ୍ତି ଭ୍ରମଣ
ପଲ୍ଲୀ-ଗ୍ରାମେ ଘରେ ଘରେ    ଦେଇ ଯଜମାନ କରେ
ପଞ୍ଚାମୃତ ଆଦ କର ଦେବତା-ପ୍ରସାଦ,
ଯାହା ସେବ ଦୂରି ଯାଏ ପରମ ପ୍ରମାଦ । ୮୩ ।

——*——

## ସପ୍ତମ ଦୃଶ୍ୟ ।

### ଗ୍ରାମଶ୍ମଶାନ ।

ଦେଖି ଦେଖି ପଲ୍ଲୀ-ଗ୍ରାମ-ଶୋଭା
କି ସୁନ୍ଦର ଅହା ମନୋଲୋଭା !
ଭୁଞ୍ଜି ଶୋଭା ମଧୁରିମା    ସ୍ଥିତ ଅଛୁ ଗ୍ରାମସୀମା
ଗ୍ରାମସୀମା ଦେଇ ବହେ ନିର୍ଝରେ ସରିତ,
ନଦୀ-କୂଳେ ଭାସିଯାଏ ସ୍ୱଦେଶୀ-ବୋଇତ । ୮୪ ।
ତଟିନୀ-ସ୍ଖଳନ ତଳଦେଶେ
ନିର୍ଜ୍ଜନ ନିସ୍ତବ୍ଧ ଗ୍ରାମ ଶେଷେ

ନାନା ପ୍ରକାଣ୍ଡ ବିଟପୀ ଘନ ଗୁଳ୍ମ ଲତା ଝିପି
କାହିଁ ଉଚ୍ଚ ହୋଇଛନ୍ତି ଭେଦ ଅଭ୍ରଦେଶ,
କ୍ଷୁଦ୍ର ଜନ ମଧ୍ୟେ ଯେସ୍ନେ ମହାତ୍ମା ବିଶେଷ । ୮୫ ।

ଏହି ସ୍ଥାନେ ଗ୍ରାମର ଶ୍ମଶାନ,
ଥିଲେ ଗ୍ରାମେ ଧନ ଭାଗ୍ୟବାନ,
ଚେତନ ସଂସାରମାୟା ଯେବେ ବିସର୍ଜିଲେ କାୟା
ଏହି ସ୍ଥାନେ ହେଲେ ସର୍ବେ ଭସ୍ମେ ପରିଣତ;
ସ୍ମୃତିପଟେ ଉଦ୍ଭାସଇ ଅଦ୍ଭୁତ ଜଗତ । ୮୬ ।

କି ବର୍ଣ୍ଣିବି ସେ ମୃତ୍ୟୁ-ସଂସାର,
ଅତୀତ ସେ କ୍ଷେତ୍ର ବର୍ଣ୍ଣିବାର,
ଅପୂର୍ବ ବିଷାଦ ଆସି ମୋର କ୍ଷୁଦ୍ର ପ୍ରାଣ ଗ୍ରାସି
ଘୋଟିଲା ନିମେଷ ମଧ୍ୟେ ନିଖିଳ ଜଗତ,
ମୃତ ପ୍ରିୟଜନ ସ୍ମୃତି ହୃଦୟେ ଜାଗ୍ରତ । ୮୭ ।

କ୍ଷୁଦ୍ର ଗ୍ରାମେ କେତେ ପରିବାରେ
ନିକ୍ଷେପିଣ ଶୋକ-ଅନ୍ଧକାରେ
ଜନକ ଜନନୀ କେହି, ସନ୍ତାନେ ପରମସ୍ନେହୀ,
ଭ୍ରାତା ଭଗିନୀ ବା ପ୍ରିୟେ ଚେତନ ଏ ସ୍ଥାନେ
ଅଛନ୍ତି ବିଲୟ ଲଭି ଭୀଷଣ ଶ୍ମଶାନେ । ୮୮ ।

ପ୍ରାଣପ୍ରିୟା ଶିଶୁ ସ୍ୱସନ୍ତାନ
ତେଜି ମାତା କରିଛି ପ୍ରୟାଣ,
ପ୍ରିୟତମ ପରିବାର ଛାଡି ଗୃହସ୍ଥ ତାହାର
ଆସି ଏଥି ଶୋଇଅଛି ଅଚଳା ନିଦ୍ରାରେ,
ଭସାଇ କୁଟୁମ୍ବବର୍ଗେ ଶୋକ-ପାରାବାରେ । ୮୯ ।

କାର୍ଯ୍ୟଦକ୍ଷ ପ୍ରବୀଣ ଯଶସ୍ୱୀ
ଅତୁଲ ସମ୍ପଦ-ଅଧିକାରୀ
ନିଜ ସୁଦୀର୍ଘ ଜୀବନେ    ଯାପିଣ ଅର୍ଥୋପାର୍ଜନେ
କେତେ ପ୍ରତିବାସୀ ଗଲା ଚିପିଲା ସେ ହେଳେ,
କି କଲା ସେ ପାପଧନ ତାର ଶେଷ ବେଳେ ? ୧୦ ।
ଦେଖ ଦୁଃଖେ ରଙ୍କପ୍ରାଣଧନ
ଲଭିଥିଲୁ ବିଧ୍ୱଂସ କୃପଣ,
ସହିଣ ଉଦର କ୍ଲେଶ    ଧରିଣ ମଳିନ ବେଶ
ବଞ୍ଚିତ ସମ୍ପତ୍ତି ଯହିଁ ସମ୍ପାଦ ସେ ଥିଲା,
ପ୍ରାଣ ଗଲାବେଳେ କିଛି ସଙ୍ଗେ ନ ନେଲା ! ୧୧ ।
ସୁମଧ୍ୟମା ଯୁବତୀ ନବୀନା
ଅପାଙ୍ଗେ ପ୍ରଣୟୀ ଯାର କଣା,
କାହିଁ ଚାରୁ ଲୋଲ ଭୃରୁ    କାହିଁ ତାର ପୀନ ଉରୁ ।
ଦେଖ ଭୋଗତୃଷ୍ଣା କେଉଁ ବିଦେଶେ ଲୁଚିଛି ।
ତା ଚୂର୍ଣ୍ଣକୁନ୍ତଳ ଏଥି ପଡ଼ି ତ ରହିଛି । ୧୨ ।
ସୁହାସିନୀ ନବୀନା-କାମିନୀ
ନବକାନ୍ତ-ପ୍ରାଣ-ପ୍ରଣୟିନୀ
ଦେଖ ତା ମନ୍ଥର ଗତି    ଝଟହଝଟହ ହାସ୍ୟ ଅତି,
ଦେଖ ତା ନବଯୌବନ ନେଇଛି ଅଞ୍ଚପୂ
ଏକା ଏ ନିର୍ଜନେ, କେହି ନାହାନ୍ତି ତା ସଙ୍ଗ । ୧୩ ।
ବିକଟାଳ ସ୍ଥାନ ଏ ଶ୍ମଶାନ,
ପଡ଼ିଅଛି ଶବ ଅସ୍ଥିମାନ,

ରାତ୍ରେ ଚରଙ୍କୁଣୀମାନେ ସେବନ୍ତି ନାଚ ସନ୍ଧାନେ,
ବିକଟେ ଗୋମାୟୁଗଣ କରୁ ଅଟ୍ଟହାସ
କ୍ଷୁଧାଟେ ଝୁଣନ୍ତି କେବେ ଶବ ସଢ଼ାମାଂସ । ୧୪ ।

ଅଭି ନାଷ୍ଟଥ ଏ ମଶାଣି,
ବିହରନ୍ତି ଭୂତ ଓ ଡାଆଣୀ,
ବୃକ୍ଷ କରେ ରଡ଼ମଡ଼, ପକ୍ଷୀ ପକ୍ଷ ଧଡ଼ପଡ଼,
ବୃକ୍ଷେ ବସି ରାବେ କେବେ କାଉ 'କାଅ କାଅ',
ପ୍ରାଣୀଙ୍କୁ ଶୃଗାଳ କିବା ଡ଼ାକେ 'ଆଅ ଆଅ' । ୧୫ ।

ବୃଥା ଏ ପାର୍ଥିବ ଅଭିମାନ,
ଜାତି, କୁଳ, ଧନ, ଜନ, ମାନ,
ଜୀବନ-ଯୌବନ-ଗର୍ବ, ରାଜ୍ୟ, ବିଦ୍ୟା, ଯଶ ସର୍ବ
କାଳବଳେ ଏକାବେଳେ ଭଜନ୍ତି ବିଲୟ,
ଚରମ କାଳରେ କେହି ନ ଗମନ୍ତି ସହ । ୧୬ ।

କହ ନନ୍ଦ ! କେବଣ ଉଦ୍ଦେଶେ
କାହିଁ ଆସୁ ଯାଉ କେଉଁ ଦେଶେ ?
ଆଦି ଅନ୍ତ ତୋର ମୋର ଘୋଟିଛି ଅନ୍ଧାର ଘୋର,
ଜ୍ଞାନଜନେ ଦେଖିଛନ୍ତି ତୋର ଆଦି ଶେଷ,
କେ କହି ପାରିବ ନନ୍ଦ ! ମୋହର ସନ୍ଦେଶ ? ୧୭ ।

— ❀ —

## ଅଷ୍ଟମ ଦୃଶ୍ୟ ।

### ଗ୍ରାମ-ହାଟ ।

ଗ୍ରାମେ କାହିଁ ବସେ ପାଲହାଟ,
ଦୂର ଯାଏ ଗ୍ରାମ ବାଟ ଘାଟ;

ଅପେଣ ଦୋକାନୀମାନେ     ବସି ନିଜ ନିଜ ସ୍ଥାନେ
ଯେ ଯାହାର ସଉଦା ସେ କିଣନ୍ତି ବିକନ୍ତି,
ପଇସା କଉଡ଼ି ଦବ୍ବ ବଦଳ ରଖନ୍ତି । ୯୮ ।
ପାନ, ଗୁଆ, ମିଠାଇ, ଉଖୁଡ଼ା,
ଖଜା, ମୁଆଁ, ମୁଢ଼ି, ଗୁଡ଼, ଭୁଜା,
ହଳଦ, ତେଲ, ନଡ଼ିଆ,     କଦଳ, ମାଛ, ଶୁଖୁଆ,
କାଠ, ହାଣ୍ଡି, ଲୁଣ, ଦବ୍ବ, ପରିବା, ଚାଉଳ—
ଅଦ ଛଡ଼ା କିଣା ହୁଏ, ଶୁଭଇ ଚହଳ । ୯୯ ।
ବହୁଜନ ମିଳନ୍ତି ଯେଉଁଠାରେ,
କଳ ଗୋଳ ଲାଗଇ ସେଠାରେ,
ଅଛଇ ହାଟଦଣ୍ଡିଆ     ହୋଇ ହାଟ ମଧ୍ୟେ ଠିଆ,
କଳ ଗୋଳ ହେଲେ ହାଟେ ସେହି ଭାଙ୍ଗିଦଏ,
ଦୋକାନୀମାନଙ୍କଠାରୁ ତୋଳା କର ନଏ । ୧୦୦ ।
ସରଗଲେ ସଉଦାଟ ହାଟେ
ଚାଲିଯାଏ ଯେଝା ଯାହା ବାଟେ,
ଦେଖି ଏପରି ସ୍ୱଭାବ     ମୋ ମନେ ଜାଗେ ଏ ଭାବ—
ଏ ଭବ ଅଟଇ ହାଟ, ସକଳେ ବେଭାର
ବାଟ ଧରି ଚାଲିଯାନ୍ତି ସର୍ବେ ଯେ ଯାହାର । ୧୦୧ ।

ସ ମା ପ୍ତ ।

Printed by V. KAR. The U. S. Press, Cuttack.

# ଉତ୍ସର୍ଗପତ୍ର ।



ସାହିତ୍ୟରସିକ, ବିଦ୍ୟୋତ୍ସାହୀ, ସୁଶାସନପ୍ରବର୍ତ୍ତକ

ଶ୍ରୀଳ ଶ୍ରୀଯୁକ୍ତ ତାଳଚେର୍‌ଅଧିପତି

ଶ୍ରୀ କିଶୋରଚନ୍ଦ୍ର ହରିଚନ୍ଦନ ମହୋଦୟଙ୍କ

କରକମଳରେ

(ଏକ ସମୟରେ ଉତ୍ସାହ ପ୍ରାପ୍ତି ହେତୁ)

କୃତଜ୍ଞତାର

କ୍ଷୀଣ ନିଦର୍ଶନ ସ୍ୱରୂପ

ଏହି ନାଟକଖଣ୍ଡି

ଅର୍ପିତ ହେଲା ।

ବଶମ୍ବଦ

ଲେଖକ ।

# ରତ୍ନମାଳୀ ନାଟକ ।

## ନାଟ୍ୟୋଲ୍ଲିଖିତ ବ୍ୟକ୍ତିଗଣ ।

ପୁରୁଷ—

ଗୋବର୍ଦ୍ଧନ—ବୃଦ୍ଧ ଦସ୍ୟୁ ।

ସୁବଳ ଓ ସୁଦାମ—ଦୁଇ ବନ୍ଧୁ ।

ବୀରଚନ୍ଦ୍ରଦେବ—ପୌଢ଼ଭୂମି ନରପତି ।

ବଳବନ୍ତସିଂହ—ଜଣେ ଅକ୍ରମଣକାରୀ ( Invador ) ।

ଶ୍ରୀଧର—ସୁଦାମର ପିତା ।

ଗଦାଧର—ସୁବଳର ପିତା ।

ଦୁର୍ଜ୍ଜନସିଂହ—ରତ୍ନମାଳୀର ରୂପାନ୍ତର ।

ମନ୍ତ୍ରୀ, ଗୋବର୍ଦ୍ଧନଙ୍କର ପୁତ୍ରଗଣ, ରାଜପାରିଷଦବର୍ଗ, ପଞ୍ଚଅନ୍ନାମକ ଭୃତ୍ୟ, ଦ୍ୱାରୀ, ଦଳପତିଗଣ, ପ୍ରହରୀବର୍ଗ, କାରାବାସୀଗଣ, ଦୂତଗଣ, ସୈନିକଗଣ, ଗ୍ରାମ୍ୟଲୋକମାନେ, କୃଷକ, ଅଭିଯୋଗକାରୀମାନେ, ପାର୍ଶ୍ୱ ମିତ୍ରଗଣ, ଚଣ୍ଡାଳଗଣ, କୈବର୍ତ୍ତ, ଅଣାଦାର, ସୋଠାଦାର, ଛତ୍ରଧାରୀ, ଚାମରଧାରୀ, ଢୁଲିଆ, ଭେରିଆ, ଶଙ୍ଖୁଆ ଇତ୍ୟାଦି ।

ସ୍ତ୍ରୀ—

ରତ୍ନମାଳୀ—ଶାଳକୁଞ୍ଜ ରାଜାଙ୍କ କନ୍ୟା ।

ଊର୍ମିଳା ଓ ଚଞ୍ଚଳା—ବୀରଚନ୍ଦ୍ରଦେବଙ୍କର ଦୁଇ କନ୍ୟା ।

ପ୍ରଭାବତୀ—ଗୋବର୍ଦ୍ଧନଙ୍କ ପତ୍ନୀ ।

ପ୍ରମଦା—ଶ୍ରୀଧରଙ୍କ ପତ୍ନୀ ।

ରୋହିଣୀ—ଗଦାଧରଙ୍କ ପତ୍ନୀ ।

ଭିକାରଣୀ—ରତ୍ନମାଳୀର ରୂପାନ୍ତର ।

ଗୋବର୍ଦ୍ଧନଙ୍କର ପୁତ୍ରବଧୂଗଣ, ଦୂତୀ ଓ ଅନ୍ୟ ଦାସୀଗଣ, ଗୋପାଳୁଣୀ, ଗ୍ରାମ୍ୟରମଣୀଗଣ, ପୁରରମଣୀଗଣ, ମାଲ୍ୟାଣୀଗଣ, ମେହେଁନ୍ତ୍ରାଣୀଗଣ ଇତ୍ୟାଦି ।



# ଶୁଦ୍ଧିପତ୍ର ।



| ପତ୍ରାଙ୍କ ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|
| ୭—୧୫ | ନଇବେ | ଜାଇବେ |
| ୯—୧ | ଶୋଣ୍ଣା | ଶୋଠା |
| ୧୦—୧୧ | ଅପସ୍ୱ | ଅପସଧୀ |
| ୧୨—୧୭ | ଦନଦଣ | ଦନାଦଣ |
| ,,—୨୧ | — | ! |
| ୨୧—୧୮ | (୨ୟ) ଡାକ | ଡାକ୍ |
| ୨୪—୯ | ଅସ୍ତଗି | ଅସ୍ତଗୀ |
| ,,—୧୨ | ଏହୂତ ବରସିକା | ଏହୂତବ ରସିକା |
| ୨୫—୨୧ | କୃତଦାସ | କ୍ରୀତଦାସ |
| ୩୯—୧୭ | (ଶେଷରେ) । | |
| ୪୩—୮ | କଷ୍ଟରେ | କଷ୍ଟରେ |
| ୪୪—୨୩ | (ଶେଷରେ) ; | |
| ୪୫—୮ | ବାପା | ବାପ |
| ୪୭—୪ | ଲଭର | ଲଭର |
| ,,—୧୭ | ଶ୍ରଣିତ | ଜାଣିତ |
| ୫୨—୧୧ | ନହୁଣୀର | ନହୁଣିର |
| ,,—୧୭,୧୯ | ନହୁଣୀ | ନହୁଣି |
| ୫୩—୨୫ | । | ?— |
| ୫୪—୧ | ଝାଡ଼ | ଝାବଡ଼ |
| ,,—୯ | (ଅଦ୍ୟରେ) ଲୁଥଃଭ | |
| ,,—,, | ଦେଉଥିଲ | ଦେଉଥିବ |
| ,,—୨୫ | —। | ? |
| ୫୫—୫ | ମହାଦେଦ | ମହାଦେବ |
| ,,—୧୧ | ଛଡେଇ | ଛଡେ |
| ୫୬—୧ | ବାହାବେବ | ବାହାହେବେ |
| ୫୬—୧୧ | ହନୁର (ପରେ) | , |
| ୫୮—୮ | ପଡ଼ତସ୍ | ପଡ଼ତସ୍ୱେ |
| ,,—୧୪ | (ଶେଷରେ) ? | |
| ୫୯—୨୨ | ଡାକୁ | ଡାକ୍ |
| ୬୦—୭ | କର୍ମ | କର୍ମେ |
| ୬୩—୧୧ | ଦମ୍ନୀନ | ଦମ୍ଭମନ |
| ,,—(ଗୀତ ଶେଷରେ) | G. S. | |
| ,,—୨୩ | ହଁସାବୃଭି | ହଁସାବୃତ୍ତି |
| ୬୪—୨ | ଯେବାଉ | ଯେବାରୁ |
| ,,—୧୩ | (୨ୟ) ବନ୍ଧଲେ | ବନ୍ଧନ୍ତୁ |
| ୬୫—୧୦ | ସ୍ୱର୍ଗ | ସ୍ୱର୍ଗି |
| ,,—୧୯ | ଥିଏସ | ଥିସ |
| ,,—୨୨ | ଭଇଣୀ | ଭଇଣି |
| ୭୬—୩ | ରମଣ | ରମଣୀ |
| ,,—୨୩ | ନଉବେ | ଜାଉବେ |
| ୭୭—୧୦ | ଏବେଶେ | ଏବେଶେ |
| ,,—୧୧ | ପୃକ୍ତ ପୃକ୍ତ | ପୃକ୍ତିପୃକ୍ତ |
| ,,—୨୦ | ଜଉର୍ଦ୍ଦନ | ଜନାର୍ଦ୍ଦନ |
| ,,—୨୧ | ଦୁଃଖି | ଦୁଃଖୀ |
| ୭୮—୮ | କହୁଡ | କହୁଇ |

| ପତ୍ରାଙ୍କ ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
| --- | --- | --- |
| ୬୮—୧୪ | ବଲ... | ବସ |
| ୬୯—୧୪ | ଶିସର... | ଶିବର |
| ୭୧—୧ | ବହ୍ନେ... | ବହ୍ନେ |
| ,, —,, | ଶିବାରେ... | ଶବରେ |
| ,, —୨୩ | ପାପୀଷ୍ଠ... | ପାପିଷ୍ଠ |
| ୭୪—୧୮ | ଯେଗୀ... | ଯୋଗୀ |
| ୭୭—୧୦ | ସମ୍ଭାନ୍ତ... | ସମ୍ଭ୍ରାନ୍ତ |
| ,, —୧୪ | ଅସ୍ତ... | ଅସ୍ତି |
| ,, —୧୬ | ନରବ... | ନୀରବ |
| ୮୮—୧୧ | ସହ... | ସିଂହ |
| ୯୦—୬ | କୃତଦାସ... | କ୍ରୀତଦାସ |
| ୯୨—୧୩ | ଧନ... | ଧନୁ |
| ୯୭—୧ | ଦୁଃଖି... | ଦୁଃଖୀ |
| ୯୯—୬ | ଭମ୍ବୁ... | ଭୂମ୍ବୁ |
| ୧୦୨—୩ | ନେମା... | ଜେମା |
| ୧୦୭—୨ | ଶଠ... | ଶଠ |
| ୧୦୮—୧୬ | ଦସ୍ୟ... | ଦସ୍ୟୁ |
| ୧୧୧—୧୩,୧୪ | ଯେମା... | ଜେମା |
| ୧୧୩—୨୧ | ଛଲୁ... | ଛାଲୁ |
| ୧୧୪—୭ | ପେଷର... | ପେଷଣ |
| ୧୧୯—୧ | ମସ୍ତିଷ୍କ... | ମସ୍ତକ |
| ,, —୨୦ | ଧନା... | ଧନ |
| ୧୨୦—୭ | ଏକାଠ... | ଏକାଗ୍ର |